ଭୂଗୋଳ ପ୍ରକାଶ ।୯। ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।

—o—

## ଚତୁଃଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ମନେ ମନେ ଗୁଣି । କହଇ ଶୁଣ ଚକ୍ରପାଣି ॥ ପୁଣ୍ୟ କରିବ ପୁଣ୍ୟକାଳେ । ନିଷେଧ ନ କରିବ ଭାଳେ ॥ ପୁଣ୍ୟକାଳଟି କେ ଅଟଇ । କେମନ୍ତେ ପୁଣ୍ୟ ସେ କରଇ । ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ ॥ ଏମନ୍ତ ବାକ୍ୟ ଶୁଣି କର୍ଣ୍ଣେ । କହନ୍ତି କମଳ ଲୋଚନେ । ୫ । ଶ୍ରୀ ଭଗବାନୁବାଚ ଶୁଣ ଅର୍ଜୁନ ତୋଷ ମନେ । ତୋତେ କହିବା ଦିବ୍ୟଜ୍ଞାନେ । ମାତାର ପଦ୍ମ ଫୁଟିଥାଇ । ସେ ଦିନ ପୁଣ୍ୟକାଳ କହି ॥ ସେ ଦିନ ପିତା ବୀଜ ଦେବ । ଅରଦିନରେ ନ ଛୁଇଁବ ॥ ଏ ପରି ଅର୍ଥ ତତ୍ତ୍ୱସାର । ଶୁଣି ଅର୍ଜୁନ ମହାବୀର । ୯ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଚତୁଃ-ଚତ୍ୱାରିଂଶୋଽଧ୍ୟାୟଃ ।

---

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ-ଅର୍ଜୁନ ବେନିକର ଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି । ୧ । ନାରଦ ମୁନି ଏକଦିନେ । ଗଲେ ବସୁଦେବ ଭୁବନେ ॥ ପରିବାରଙ୍କ ପାଦ ଧୋଇ । ଆସନେ ବସାଇଲେ ନେଇ ॥ ପରିବାର ଜଳ କେହୁ ପୁଣି । ଏ ବାକ୍ୟ କହ ଭଗବାନ । ୪ । ଶ୍ରୀ ଭଗବାନୁବାଚ—କହନ୍ତି କମଳ ଲୋଚନ । ଶୁଣି ଅର୍ଜୁନ ଦେଇ ମନ ॥ ନାରଦେ ବସୁଦେବ ଦେଖି । ମନଆନନ୍ଦେ ହୋଇ ସୁଖି ।

ଅନନ୍ଦ ମନେ ଗଦଗଦ । ବୋଲଇ ଶୁଣ ହେ ନାରଦ । କ୍ରୁଷ୍ଣ ମହିମା ମୋତେ କହ । ମନ ମୋ ସନ୍ତୋଷ କରଅ । ଏତେକ ବୋଲି ପାଦଧରି । ବେଗନୟନୁ ବହେ ବାରି । ନୟନୁ ନୀର ଯେ ବହଇ । ନାରଦ ପାଦେ ପଡ଼ ଯାଇଁ ।୧୨। ପବନ ଜଳ ସେ ଅଟଇ । ବ୍ରହ୍ମାଣ୍ଡ ଭୂଗୋଳରେ କହି ॥ ଏ ପଦ ଅର୍ଥର ବିଗ୍ରହ । କହିଲେ ପ୍ରଭୁ ଅର୍ଥ ସାର । ଶ୍ରୀ ଭଗବାନୁବାଚ—ଚୈତନ୍ୟ ବସୁ ଦେବ କହି । ତାର ଭବନ ଜ୍ୟୋତି ହୋଇ ।୧୩। ନାରଦ ମନ ହେ ଅର୍ଜ୍ଜୁନ । ପବନ ଜଳ ରଜ ଜାଣ ॥ ମନରୁ ପବନ ଖସଇ । ପବନ ଜଳରେ ପଡ଼ଇ ।୧୪। ଏମନ୍ତ ଅର୍ଥର ସନ୍ଦେଶ । ଭଣିଲେ ବଳରାମ ଦାସ ।୧୫। ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନସମ୍ବାଦେ ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

---

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନପୁଣି ପଚାରଇ । ବିନୟ ଭାବେ ନାହି ନାହି ॥ କଥାଏ ମୋ ମନେ ପ୍ରବେଶ । କହିବା ହେଉ ଏସନ୍ଦେଶ କପୋତ କପୋତି ବାଳକ । ଘେନିଣ ଚଳିଲି ଲୁବ୍‌ଧକ ॥ ଶବର ଜାଳରେ ପଡ଼ିଲି । ଏକଥା ସଂଶୟ ଲାଗିଲା ॥ କପୋତକପୋତୀକେ ପୁଣ । ବାଳକ କେହୁ ତା ପ୍ରମାଣ ॥ ଶବର କେଉଁଠାରେ ଥିଲା । ଆହାର କେହୁ ବୋଲାଇଲା । ଜାଳ ବୋଲିଣ ଏ କେମନ୍ତ । ବୃକ୍ଷ ଦଗଟି କେହୁ ତହିଁ ବୃକ୍ଷଯେ କେଉଁଠାରେ ଥିଲା । ବନ କେମନ୍ତେ ବୋଲାଇଲା । ଏ ଅର୍ଥ ଫେଡ଼ ମୋତେ ଜହ । ମନରୁ ଫେଡ଼ ମୋ ସନ୍ଦେହ । ଶ୍ରୀଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନଦେଇ । ଉତ୍ତମ ଶିଷ୍ୟେ ଗୁରୁ କହି ॥ ବୃକ୍ଷ ବୋଲିଣ ଦେହ ଜାଣ ଜୀବ ପରମ ପକ୍ଷୀ ପୁଣ । ଜୀବଟି କପୋତୀହୋଇଲା । କପୋତପରମକହିଲା ।

ଏ ବୃକ୍ଷେବେନିପକ୍ଷୀଥାନ୍ତି । ଏକ ଅରେକବୃହରନ୍ତି ॥ ପରମଶୂନ୍ୟ ତାର ବାସ । ସକଳଭୁବେ ସେଉଦାସ ॥ ନରଡେପକ୍ଷୀ ରୂପେଥାଇ ବାସନା ଭୋଗେ ତୋଷହୋଇ ॥ ଗ୍ରମନାମଟି ତାହାଙ୍କର । ସାକ୍ଷୀ ସ୍ବରୂପେତାବହାର ॥ କପୋତିମାୟାଚରବାହରେ । ନବତେନାନା କର୍ମ କରେ ॥ ମତ୍ତଗନ୍ଧରେକର୍ମକର । ତ୍ରିଗୁଣ ସଙ୍ଗମେ ନାତ୍ୟେପଣ୍ଡ ଏମନ୍ତେ ପ୍ରାଣୀଯାଇନାଶ । ଶୁଣଅର୍ଜ୍ଜୁନଜ୍ଞାନରସ । ପ୍ରଳୟକାଳରେ ଏକଥା । ଶୁଣିବାକୁତୁ ସାମରଥା ।୨୩। କାଳଟି ଶବରକୁ କହ । ସନ୍ଧି ପାତଟିଜାଲ ହୋଇ ।୨୧। ବେନିବାଳକଚକ୍ଷୁପୁଣି । ଅହାର ଗ୍ରାସଟି ଜାଣ ॥ ଏଦେହବନ ବୋଲିକହ୍ନାକର୍ଣ୍ଣନାସିକାଦଗହୋଇ ସନ୍ଧିପାତଟି ଅକର୍ଷଇ । ଏମନ୍ତେ ପ୍ରଳୟହୁଅଇ ॥ ମୁଖନାସିକାଚକ୍ଷୁ କର୍ଣ୍ଣ । ଏ ଗୃହଦଗ ହୋଇଶୂନ୍ୟ ।୧୫। ଗ୍ରଅ ଶବଦଟି ହଜାଇ । ଜୀବପରମ ଖୋଜାଗଲା ॥ ଶଅଁ ଚୈତନ୍ୟ ବେନିବାଳେ । ଏଣେ ପଡ଼ନ୍ତିପାଇଜାଲେ ॥ କପୋତକପୋତି ମିଳନ୍ତି । ଗୃହଦଗକୁ ସେ ଗମନ୍ତି ॥ ସମସ୍ତେ ବୃକ୍ଷ ଛାଡ଼ିଗଲେ । ଓଁ କାର ଶବ୍ଦେ ମିଳିଲେ ॥ ଶବର ଧେନୁ ଚଳିଗଲା । ନିଜ ଭୁବନରେ ଥୋଇଲା ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରଅର୍ଜ୍ଜୁନ ସମ୍ବାଦେ ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।

— ⁂ —

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନଉବାଚ – ଅର୍ଜ୍ଜୁନ ବୋଲଇ ଗୋସାଇଁ । ଅହ୍ଲର ପାଦେକ ଅଛଇ ॥ କପୋତ ଉମ୍ବ କେ ଦଅଇ । ବେନି ବାଳକ ତହୁଁ ହୋଇ ॥ ଏକଉମ୍ବ୍ରୁ ବେନିଛୁଅ । ଫେଡ଼ି କହିବ ଚତ୍ରବାହ୍ମ ଶ୍ରୀ ଭଗବାନୁବାଚ –କହନ୍ତି ପ୍ରଭୁ ଦଇତ୍ୟାରି । ଶୁଣ ଅର୍ଜ୍ଜୁନ

ହେତୁ କର । ଶୂନ୍ୟରୁ ବିନ୍ଦୁ ଯେ ଖସିଲା । ମାତାର ପଦ୍ମରେ ପଡ଼ିଲା ॥ ସେ ରଜବୀର୍ଯ୍ୟ ଏକଠାରେ । ହୋଇଲା ଡିମ୍ବ ଏପ୍ରକାରେ କେତେକଦିନ ତହୁଁ ଗଲା । ସେ ଡିମ୍ବ ବେନି ଫାଳ ହେଲା ॥ ଜୀବ ପରମ ବେନି ହୋଇ । ଗୁଆ ଯେ ମା ଅଛି ବୋଲାଇ ॥ ଶରୀର ଡିମ୍ବ ବୋଲାଇଲା । ବେନି ବାଳକ ଚନ୍ଦୁ ହେଲା ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରଅର୍ଜୁନ ସମ୍ବାଦେ ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।

— ✽

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ॥ ପରମବ୍ରହ୍ମ ନିରାକାର । ପୁରୁଷୋତ୍ତମ ଚକ୍ରଧର ॥ ହେ ଦୀନବନ୍ଧୁ ଦଇତ୍ୟାରି । ପଦ୍ମନୟନ ଗଦାଧାରୀ ॥ ହେ ନୀଳଗିରି ନାରାୟଣ । ଭକ୍ତଙ୍କୁ ଯାଚୁଥିବୁ ଶରଣ ॥ ବ୍ରହ୍ମାଣ୍ଡ ଭୂଗୋଳ ପୁଚ୍ଛଇ । ଅର୍ଜୁନ ପୁଣି ପଚାରଇ ॥ ପିଙ୍ଗଳା ପୂର୍ବଜନ୍ମ କାହିଁ । ମୋତେ କହିବା ଭାବଗ୍ରାହୀ ॥ ତାର କି ପୂର୍ବଭାଗ୍ୟଥିଲା । ଶରୀରେ ଚୈତନ୍ୟ ଜନ୍ମିଲା ॥ ଏକଥା କହ ଦାମୋଦର । ପଦ୍ମନୟନ ଗଦାଧର ॥ ଶ୍ରୀ ଭଗବାନୁବାଚ କହନ୍ତି କମଳାର ବର । ଶୁଣ ଅର୍ଜୁନ ମହାବୀର ॥ ପୂର୍ବେ କମଠ ନୃପବର । ଦିନେ ଦେଖିଲା ଉପୀବର ॥ ମାତଙ୍ଗ ଋଷିଙ୍କ ବନରେ । ପ୍ରବେଶ ହୋଇ ଧାତକାରେ ॥ ମାତଙ୍ଗ ମହାଋଷି ପତ୍ନୀ । ସତୀରେ ଗଣିତା କାମିନୀ ॥ ରଜା ବୋଇଲେ ଚଣ୍ଡେ ଗୁଳ । ଋଷି ଭାରିଯା ତୁମ୍ଭେ ହର ॥ ରାଜା ଅଜ୍ଞାରେ ଗଲେ ଚଣ୍ଡ । ଅତି ଦୁଷ୍ଟ ଯେ ସେ ପ୍ରଚଣ୍ଡ ॥ ଋଷିପତ୍ନୀଙ୍କୁ ସେ ହରିଲା । ଧର୍ମପଥକୁ ସେ ଛାଡ଼ିଲା ॥ ତହୁଁ ଯେ ଋଷି କ୍ରୋଧ ହୋଇ । କୋପେ ବୋଇଲେ ରାଜା ଗୁହିଁ ॥ ଏ ଦୋଷେ ହେଉ

ତୋ ମରଣ । ଜନ୍ମ ତୁ ପିଙ୍ଗଳା ହୋଇଣ ॥ ଏମନ୍ତ ଋଷି ଶାପ ଦେଲା । ବୋଲେ କମଠ ନୃପମଣି ॥ କେମନ୍ତେ କାରଣ ପାଇବ । ବେଶ୍ୟା ଜନ୍ମରୁ ମୁଁ ତରିବି ॥ ଋଷି ବୋଇଲେ ରାଜପୁତ୍ର । ଅମ୍ଭର ବଚନ ଏ ସତ୍ୟ ॥ ବିଷ୍ଣୁ ଭକତ ତୁ ହୋଇବୁ । ଏ ଘୋରଫସାରୁ ତରିବୁ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

— ❋ —

## ଊନପଞ୍ଚାଶତ୍ ଅଧ୍ୟାୟଃ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବିନୟ ଭାବରେ । ପଡ଼ଇ କୃଷ୍ଣର ପୟରେ ॥ ହେ ନାରାୟଣ ଦୀନବନ୍ଧୁ । ଉଦ୍ଧର ତୋର ମାୟାସିନ୍ଧୁ ॥ ପରମାର୍ଥରେ ଯେ କହିଲ । ଶରୀର ଅର୍ଥ ଗୁପ୍ତକଲ ॥ ଶରୀରେ ପିଙ୍ଗଳା କେ କହ । ଥିଲାକ କେଅବା ଅଛଇ ॥ ପଥେ ଯେ ଅଭଯାତ ହେଲ । ତାକୁ ନୟନେ କେ ଦେଖିଲା ॥ ତୁଚ୍ଛି ପୁରୁଷ କେ ଅଛଇ । ପ୍ରାଣନାଥଟି କେ ବୋଲାଇ ॥ ନିଜ ଦେହଟି କେଉଁ ପୁରି । ଦ୍ୱାରଟି କେ ଅଛଇ ଜାଣି ॥ ନିର୍ଣ୍ଣୟ କର ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ । ଶ୍ରୀଭଗବାନୁବାଚ - କହନ୍ତି ଜଗତ ସୋଦର । ଶୁଣ ଅର୍ଜ୍ଜୁନ ତତ୍ତ୍ୱ ସାର । ଜୀବଟି ପିଙ୍ଗଳା ଅଛଇ । ଧନୀ ପୁରୁଷ ମନ କହ । ଯହୁଁ ହୋଇଲା ପ୍ରାନ୍ତକାଳ । ଶରୀରେ ଘୋଟିଲାକ କାଳ ॥ କାଳ ଘୋଟନ୍ତେ ଜୀବ ଗଲା । ଶରୀର ଶୂନ୍ୟ ଯେ ହୋଇଲା ॥ ଏ ଦେହୁଁ ଛାଡ଼ିଗଲେ ମନ । ପିଙ୍ଗଳା କରଇ ଭ୍ରମଣ ॥ ମଅ ଶବଦ ମୂଳ କହ । ଗଙ୍ଗା ବେଦା ଦ୍ୱାର ହୋଇ ॥ ଗୃହ ବାହାରେ ପୁଣି [illegible] ପିଙ୍ଗଳା କରଇ ଭ୍ରମଣ । ମଧ୍ୟୀ ଯେ ଅକାଶ ଅଛଇ । ଶୂନ୍ୟ ଶବଦେ ଖେଳୁଥାଇ ॥ ତକ୍ଷ୍ଣୁ ପୁରୁଷ କାମ

ଅର୍ଥ । ଜ୍ୟୋତିପୁରୁଷ ପ୍ରାଣନାଥ ॥ ଅନେକ ବେଳଗଲାଇ ଯନ୍ତ୍ରେ ।
ପିଙ୍ଗଳା ଗୃହ୍ନୁଁ ଥିଲ ପଥେ ॥ ଯହୁଁ ସେ ଧନୀ ନ ଅଇଲ । ପିଙ୍ଗଳା
ମନେ ବିଚାରିଲ ॥ ବୋଲଇ ଅନ୍ୟ କାର୍ଯ୍ୟ ନାହିଁ । କୃଷ୍ଣ ଶରଣ
ଯିବି ମୁହିଁ ॥ ଏତେକ ହୃଦରେ ପାଇଲ । ନଯନ ଟେକି ଅନା-
ଇଲ ॥ ଦେଖିଲ ପରଂବ୍ରହ୍ମ ଜ୍ୟୋତି । ପଦ୍ମପାଦରେ କଲ ସ୍ତୁତି ॥
ଅହେ ସୁଜନ ଜନେ ଶୁଣ । ପିଙ୍ଗଳା ଦୀକ୍ଷାମନେଘେନ ॥ ଭଣିଲେ
ବଳରାମ ଦାସ । ପିଙ୍ଗଳା ପାଦେ ମୋର ଆଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ
ନାମ ଊନପଞ୍ଚାଶତୋଽଧ୍ୟାୟଃ ।

— ❋ —

## ପଞ୍ଚାଶତ୍ ଅଧ୍ୟାୟ

ଅର୍ଜୁନ ଉବାଚ—ବୋଲେ ଅର୍ଜୁନ ଶୁଣ ହରି । ସଂଶୟ
ଅଛଇ ମୋହର ॥ ଚବିଶ ଗୁରୁଙ୍କ ସମ୍ବାଦ । ଫେଡ଼ି କହିବ
ତତ୍ତ୍ୱବୋଧ ॥ ମୀନ ପିଙ୍ଗଳା ବେଶ୍ୟାନାରୀ । କୁକ୍କୁର ବ୍ରାହ୍ମଣୀ
କୁମାରୀ ॥ ହରିଣୀ ଭର୍ଣ୍ଣନାଭ ଭର । ଶରକାରକ ମଧୁହାରୀ ॥ ଯେ
ଯେତେ କୀଟ ଯେ ସଂସାର । ଚବିଶ ଗୁରୁ ହେଲ ସର ॥ କିମାୟା
କରଣ କହିବା । ଯେବେ ଘେନିଲ ମୋର ସେବା ॥ ଶ୍ରୀଭଗବାନୁ-
ବାଚ—ଶୁଣ ଅର୍ଜୁନ ମନଦେଇ । କହିବା ଭାଗବତ ଫେଇ ।
ବ୍ୟକ୍ତ ତୁ ନ କରିବୁ କାହିଁ । ମୋ ପାଦପଦ୍ମଥାଅଛୁଇ ॥ ଚବିଶଗୁରୁ
ଙ୍କର ବାଣୀ । ତୋତେ କହିବା ପରମାଣି ॥ କୁରର୍ ପକ୍ଷୀ ଯାହା
କହି । ପବନ ବୋଲି ତାହାକୁହିଁ ।୧୦। ଜୀବନ୍ତି ବୀଜ ବୋଲିଜାଣି
ଭବ ଯେ ମାଂସ ପରମାଣ ।୧୧। ତାହାର ସ୍ୱାଦ ଲୋକେ ଜାଣି ।
ବନ୍ଦୀ କରନ୍ତି ଗୃହେ ଆଣି ।୧୨। ରଜରେ ବୀଜକୁ କ୍ଷେପିଇ । ପରମ

ପକ୍ଷୀ କ୍ଷୟ ଯାଇ ।୧୩। ଅଜଗରଟି ଭବ କହି । ପୁଣ୍ୟ କାଳରେ ସେ ଭକ୍ଷଇ । ଅନ୍ୟ-ଦିନରେ ଥାଇ ଉପେକ୍ଷେ । ସର୍ବ ଦେଖଇ ସାକ୍ଷୀ ରୂପେ ।୧୪। ଇନ୍ଦ୍ର ଯେ ଜିହ୍ବା ବୋଲାଇଲା । ରାମ ନାମଟି ସେ ରଚିଲା ।୧୫। ଏମନ୍ତେ ସଞ୍ଚରି ଅନେକ । କେବଳ ମଣେ ଅସ୍ଥା ସୁଖ । ଏମନ୍ତେ ପ୍ରାଣୀ ଯାଇ ହତ । ତୋ ଆଗେ କହିଲି ନିଶ୍ଚିତ । ନାନା ପୁଷ୍ପରୁ ମଧୁ ଆଣି । ସଞ୍ଚଇ ନିଜ ପୁରେ ପୁଣି ।୧୬। ଏ ଅର୍ଥ ଶୁଣ ହେ ଅର୍ଜୁନ । ବ୍ୟକ୍ତ ନ କର ତୁହି ପୁଣ ॥ ନିଜ ଗୃହଟି ପଦ୍ମ ହୋଇ । ପବନ ଫଣୀ ବୋଲି କହି । ପୁଷ୍ପ ଯେ ଚକ୍ଷୁ ବୋଲି ଜାଣ । ସେଠାରୁ ଧାରା ବକ୍ଷେ ପୁଣ ॥ ବିନ୍ଦୁ କୁ ମଧୁ ବୋଲି କହି । ଶୁଣ ଅର୍ଜୁନ ମନଦେଇ । ଅନେକ ଶ୍ରମେ ତା ସଞ୍ଚଇ । ନିଶିଦିବସେ ଦୁଃଖସହି ॥ ଆପଣେ ମଧୁପୁଷ୍ପ ନେଇ । ସଞ୍ଚଇ ଅତି ମୂଢ଼ ହୋଇ ॥ ଏଣୁଟି ପ୍ରାଣୀ ଯାଇ ହତ । ବିଘ୍ନ ତାହାକୁ ପରାପତ । ତବଣ ଗୁରୁ ଭାବ ଜାଣ । ମନଟି କରଇ ଭ୍ରମଣ । ମନକୁ ଅପ୍ରାପ୍ତ କରିବ । ତବଣ ଗୁରୁଙ୍କୁ ପାଇବ । କହନ୍ତି ପ୍ରଭୁ ଜଗନ୍ନାଥ । ଶୁଣ ହେ ଯୁଧିଷ୍ଠିର ଭ୍ରାତ । ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚାଶତୋଽଧ୍ୟାୟଃ ।

## ଏକପଞ୍ଚାଶତ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ମନେ ପଡ଼ିଲାଇଁ । ଯେସନେ ଶରକୃତ ପଥେ । ଶର ବାନ୍ଧଇ ହେଠମାଥେ ତାର ନିକଟେ ରାଜା ଗଲା । କେବେହେଁ ତାହା ନ ଜାଣିଲା । ଶର ପଥଟି କେ ହୋଇଲା । କେବଣ ରାଜା ପାଶେ ଗଲା । ଏଅର୍ଥ ଫେଡ଼ି

ମୋତେ କହ । ମନରୁ ଫଣସ୍ତୁ ଫିଟାଅ ।୫। ଶ୍ରୀଭଗବାନୁବାଚ—ଶର ଯେ ପବନ ଅଟଇ । ମାତା ପିତାଙ୍କୁ ପଥକହୁ । ଅଢଯନ୍ତରେ ବାନ୍ଧଥିଲ । ଶୂନ୍ୟରେ ଚନ୍ଦ୍ର ଯେ ଖସିଲ । ଜୀବସଙ୍ଗରେ ମନଗଲ । କେବେହେଁ ତାହା ନ ଜାଣିଲ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ଏକପଞ୍ଚାଶତୋଽଧ୍ୟାୟଃ ।



## ଦ୍ୱିପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ପୁଣି ପଚାରଇ । କଥାଏ ମନେ ପଡ଼ଲଇଁ । କମଳ ମଧ୍ୟେ ଭୃଙ୍ଗ ଯେତେକ । ମତ୍ତ ହୋଇଣ ମଧୁପାନେ । ଲୋଭେ କେମନ୍ତେ ନ ଛାଡ଼ିଲେ । ମର୍ତ୍ତ୍ୟରେ ବନ୍ଧନେ ପଡ଼ିଲେ । ଏ ପଦ ଅର୍ଥ ଫେଡ଼ି କହ । ଶୁଣିଲେ ସ୍ଥିର ହେବ ଦେହ । ଶ୍ରୀଭଗବାନୁବାଚ—ଅର୍ଜ୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବସ୍ତାରି ।୫। କମଳ ପୁଷ୍ପ ମଧୁ କହୁ । ଭୃଙ୍ଗ ଯେ ପବନ ଅଟଇ । ରଜୋବୀଜଙ୍କ ମଧ୍ୟେଥିଲ । ମୁଦ୍ରିତ ହୋଇନ୍ତେ ବନ୍ଧହେଲ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱିପଞ୍ଚାଶତୋଽଧ୍ୟାୟଃ ।



## ତ୍ରି ପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏମନେ ପଡ଼ିଲଇଁ । ପୂର୍ବେ ସେ ଅବନ୍ତୀନଗରେ । କନ୍ୟାଏ ଥିଲ ବସ୍ତ ଘରେ । ସେ କନ୍ୟାବାହୁଁ ଜାତହେଲ । ଏକଥା ସନ୍ଦେହଲାଗିଲ ।

ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ଭଗବାନ । ଶୁଣ ଅର୍ଜୁନ ଦିବ୍ୟ-ଜ୍ଞାନ ॥ ପୂର୍ବେ ଯେ ଦକ୍ଷପ୍ରଜାପତି । ତାର କୁମାରୀ ସ୍ୱାହା ସତୀ ॥ ମାତା ପିତାଙ୍କୁ ନମାନିଲା । ନବଗ୍ରହଙ୍କୁ ସେ ବରିଲା । ତା ଶୁଣି ଦକ୍ଷପ୍ରଜାପତି । ଝିଅକୁ ଅଭିଶାପ ଦିଅନ୍ତି ॥ ଅବନ୍ତୀନଗରେ ଜନ୍ମିବୁ । ନବ ବ୍ରାହ୍ମଣଙ୍କୁ ବରିବୁ ॥ ଏହାଙ୍କ ସଙ୍ଗ ନ କରିବୁ । ଧ୍ୟାନରେ ଶ୍ରୀକୃଷ୍ଣ ପାଇବୁ ॥ ଏକଥା ପରମାର୍ଥେ ଭଣି । ଶରୀର ଅର୍ଥ ଶୁଣ ପୁଣି ବିଦେହ ନଗ୍ର ହେଲା ଦେହୀ । ବିପ୍ରଟି ଯଜ୍ଞରୂପେ ରହି ॥ ରୂଅ ଯେ ପିତା ତାର ହେଲେ । ମଅଟି ମାତା ବୋଲାଇଲେ ॥ ଶବଦକନ୍ୟା ଯେ ଅଟଇ । ପ୍ରକୃତି ଧ୍ୟାନ ବୋଲି କହି ॥ ଅରୂପାନନ୍ଦଙ୍କୁ ଚାହିଁଲା । ସେ କନ୍ୟା ବାୟୁକୁ ଚଳିଲା ॥ ଶୁଣି ଅର୍ଜୁନ କର ଯୋଡ଼ି । କହେ ଗୋବିନ୍ଦ ପାଦେ ପଡ଼ି ॥ ଶ୍ରୋତ ମଣ୍ଡଳ କେ ଅଟଇ । ଏକଥା କହ ଭାବଗ୍ରାହୀ ॥ ଅର୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବିସ୍ତାରି ॥ ଶ୍ରୋତ ଯେ ମନ ବୋଲାଇଲା । ପବନ ମଣ୍ଡଳ ହୋଇଲା ॥ କଙ୍କଣ ଅଷ୍ଟପାଟି ଜାଣ । ମୁଖ ନାସିକା ଚକ୍ଷୁ କର୍ଣ୍ଣ ॥ ଏମନ୍ତେ ଅଷ୍ଟ ଯେ କଙ୍କଣ । ତୁ ତାହା ଚିହ୍ନି କର ଧ୍ୟାନ ॥ ଯହୁଁ ସେ ଧ୍ୟାନରେ ବସିଲା । ଷଡ଼ କଙ୍କଣ ପିନ୍ଧାଇଲା ॥ ନାସିକା ରନ୍ଧ୍ରେ ଯେ କଙ୍କଣ । ରହିଲା ଏ ଦୁଇପ୍ରମାଣ ॥ ଭଣିଲେ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ-ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରିପଞ୍ଚାଶତୋଽଧ୍ୟାୟଃ ।



## ଚତୁଃପଞ୍ଚାଶତ୍ ଅଧ୍ୟାୟ

ଅର୍ଜୁନ ଉବାଚ—ଅହେ ଗୋବିନ୍ଦ ପୀତବାସ । ଶରଣଗଲି କର ଅଂଶ ॥ ସ୍ତ୍ରୀ ଶୂଦ୍ର ପଣ୍ଡିତ ଗୃହସ୍ଥମାନେ । ତରିଲେ ସାଧୁସଙ୍ଗମେ ॥ ସ୍ତ୍ରୀ ଯେ କେଉଁ ବୋଲାଇଲା । ପଣ୍ଡିତ ଶୂଦ୍ରକେ

ହୋଇଲା ॥ କେଉଁଣଠାରେ କାହୁଁ ଥିଲେ । ଏହାକୁ କେମନ୍ତେ
ଜାଣିଲେ ॥ ଏକଥା କହ ଦାମୋଦର । ନମଇଁ ଚରଣେ ତୁମ୍ଭର ॥
ଶ୍ରୀ ଭଗବାନୁବାଚ—ଅର୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ
ବିସ୍ତାରି ॥ ଶୁଣ ଅର୍ଜୁନ ଉତ୍ତରସ । ଯେଣେ ତୋହର ଛାପନାଶ ॥
ନାରକା ବୋଲି ପ୍ରଭୁ ନାମ । ଯହିଁ କପିଳ ସାଧୁ ନାମ ॥ ସେ-
ସାଧୁ ନଗର ଉପାନ୍ତ । ସ୍ଥାପିଣ ଏକଇ ଅଶ୍ୱତ୍ଥ ॥ ନିତ୍ୟେ ସେ
ବୃକ୍ଷମୂଳେ ଥାନ୍ତି । ସୁଖେ ଗୋବିନ୍ଦ ନାମ ଗାନ୍ତି ॥ ଏକ ସ୍ତିରୀଏ
ଗ୍ରାମୁ ଯାଇ । ତଣ୍ଡୁଳ ସାଧୁଙ୍କୁ ସେ ଦେଇ ॥ ସାଧୁଙ୍କୁ ନୟନେ
ଦେଖଇ । କର୍ଣ୍ଣରେ ନାମ ଶୁଣୁଥାଇ ॥ ମଧୁଆ ନୀଚେ
ଶୂଦ୍ର ଯାଇ । ସାଧୁଙ୍କୁ ନୟନେ ଦେଖଇ ॥ ପଣ୍ଡିତ ବୋଲି ଏକ
ଥିଲା । ପାପରେ ବେଶ୍ୟା ସେ ହୋଇଲା ॥ କାହୁଁ ସେ ନ ପାରଇ
ଯାଇ । ସାଧୁଙ୍କ ସଙ୍ଗେ ପଡ଼ିଥାଇ ॥ ମୃଦୁ ଗୃଣ୍ଡ୍ରାଳ ତହିଁ ଥିଲା ।
ବଶିଷ୍ଠଋଷି ଶାପ ଦେଲା ॥ ତେଣୁ ସେ ଗୃଣ୍ଡ୍ରାଳ ହୁଅଇ । ମୃଗୟାଁ
ବିନୋଦରେ ଯାଇ ॥ ଯୋଗେଣ ସାଧୁଙ୍କୁ ଯେ ଦେଖି । ଆନନ୍ଦ
ଭାବେ ହେଲା ସୁଖୀ ॥ ସକଳ ତେଜି ସେ ରହିଲା । ସାଧୁଙ୍କ
ଚରଣେ ଖଟିଲା ॥ କେତେହେଁ ଦିନ ବହି ଗଲା । ସାଧୁଙ୍କ ପ୍ରାଣ
ତ୍ୟାଗ ହେଲା ॥ ମେନକା ଅପସରୀ ସୁତ । ନାମ ତାହାର ସୁଦ-
ନିତ ॥ ସାଧୁଙ୍କୁ ବଚନ ବୋଇଲା । ରଥ ଘେନିଣ ଚଳିଗଲା ॥
ସାଧୁ ବୋଇଲେ କଥାଶୁଣ । ଅମ୍ଭର ସଙ୍ଗ ଗୁରୁଜଣ । ୨୪ ।
ଯେବେ ସେ ରଥରେ ବସିବେ । ଅମ୍ଭେ ବସିବୁ ଭଲେ ତେବେ ॥
ସ୍ୱଦେହ ଘେନି ସେ ଚଳିଲେ । ଅଦେହ ସାଧୁ ହୁଙ୍କେଇଲେ ॥
ଏ ପଞ୍ଚଜଣ ସଙ୍ଗେ ଯାଇ । କୃଷ୍ଣର ପାଦେ ଲୀନ ହୋଇ ॥
କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୨୮ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ
ନାମ ଚତୁଃପଞ୍ଚାଶତୋଽଧ୍ୟାୟଃ ।

## ପଞ୍ଚପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଶୁଣ ଅର୍ଜ୍ଜୁନ ଯେ ଅନାଦି । ପୁଣି ଛତ୍ରମସ୍ତକ ପୁଚ୍ଛଇ । ସ୍ତ୍ରୀ ଶୂଦ୍ର ପତିତ ଯେ ହୋଇ । ଦେହରେ କହ ଭାବଗ୍ରାହୀ । ଚଣ୍ଡାଳ ଯେ ପୁଣ ହୋଇଲା । ଶୂଦ୍ର ଯେ ଦେହେ ବୋଲାଇଲା । ଗୁପ୍ତ ନ କର ଫେଡ଼ି କହ । ମୋ ମନୁ ଫିଟାଅ ସନ୍ଦେହ । ୪ । ଶ୍ରୀ ଭଗବାନୁବାଚ—ଶୁଣି ଅର୍ଜ୍ଜୁନର ବଚନ । କହନ୍ତି ଦେବକୀ ନନ୍ଦନ । ଶୁଣ ଅର୍ଜ୍ଜୁନ ମନ ଦେଇ । ମନୁଷ ଶୂଦ୍ର ନାସା କହି । ତଡ଼ିତ ବେଶ୍ୟା ଚକ୍ଷୁ କହି । ଶୂଦ୍ର ପତିତ ସେ ବୋଲାଇ । ମୁଣ୍ଡ ଚଣ୍ଡାଳ ବୋଲି କର୍ଣ୍ଣ । ନ୍ୟୂ ଠୂଳରେ ସାଧୁ ନାମ ॥ ସେ ସାଧୁ ଭଗବାନ କହି । ପରମ ବ୍ରହ୍ମ ସେ ଅଟଇ । ମହାଶୂନ୍ୟରେ ଲୀନ ହୋନ୍ତି । ଏହାକୁ ଭକ୍ତିର ଧରନ୍ତି । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚପଞ୍ଚାଶତୋଽଧ୍ୟାୟଃ ।



## ଷଟ୍‌ପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରନ୍ତି । ହେ ନାଥ ଶୁଣ ଯଦୁପତି । ଏ ଷଡ଼ଚକ୍ର ଦେହପୁରେ । ଶବଦ ଦ୍ୱାଦଶ ପ୍ରକାରେ ॥ ଏ ଅର୍ଥ କହ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ । ଶ୍ରୀ ଭଗବାନୁବାଚ—ଅର୍ଜ୍ଜୁନ ବାକ୍ୟେ ଚକ୍ରଧର । କହନ୍ତି ଭୂଗୋଳ ବିସ୍ତାର । ଏଥିରେ ଦ୍ୱାଦଶ ଶବଦ । କହିବା ଶୁଣ ଚକ୍ରଭେଦ । ନାସାରେ ଶବଦ ଯେ ବୁଝ । ବେନି କର୍ଣ୍ଣରେ ବେନି ମନ୍ତ୍ରୀ । ବେନି ଚକ୍ଷୁରେ ନିରଞ୍ଜନ । ଓଷ୍ଠରେ ବେନି ଶବ୍ଦ ଧେନ ।

ମୁଖଟିରେ ଶବଦେବଙ୍କ ଧେନ । ଗୁହ୍ୟ ଶବଦର ପ୍ରମାଣ ॥ ଅର୍ଦ୍ଧଜିହ୍ୱା ସଲଖେ ନାଦ । ଦଶ ଶବଦ ଅଛେ ଭେଦ ॥ ମୂଳ ଶୂନ୍ୟ ଶବେ ଶୁଭଇ । ସ୍ୱଧିଙ୍କା ବ୍ରଅ ଶଦ୍ଦ ହୋଇ ॥ ଏହୁ ମୂଳ ହୋ ସେ ଶବଦେ ପଦ୍ମରେ ଭ୍ରମଇ ଯେ ନାଦ ॥ ସେ ପଦ୍ମ ଭିତରେ ରହଇ । ଏ ଷଡ଼ଚକ୍ର ଭେଦ ବହି ॥ ଅର୍ଦ୍ଧ ଜିହ୍ୱା ସଲଖେ ବାଟ । ପଚ୍ଛେ ଭଲଗ୍ନେପା କବାଟ ॥ ସେ ଦ୍ୱାରୁ ପବନ ବାହାରେ । ଦ୍ୱାଦଶ ଦ୍ୱାରେ ସେ ବହରେ ॥ ବସ୍ତୁ ଦ୍ୱାରେ ଭନ୍ନ ବାଜେ । ଅନନ୍ତ ଧ୍ୱନି ଶୂନ୍ୟେ ବାଜେ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଟ୍‌ପଞ୍ଚାଶତୋଽଧ୍ୟାୟଃ ।

—*—

## ସପ୍ତପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରଇ । ହେ ନାଥ ଶୁଣ ଭବଗାହ୍ମୀ । ଏ ତନପୁରେ ତୋ ବସ୍ତି ॥ କେଉଁ ସ୍ଥଳରେ ତୋର ସ୍ଥିତି ॥ ଏ ବାକ୍ୟ କହ ଦାମୋଦର । ନମଇଁ ଚରଣେ ତୁମ୍ଭର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନଦେଇ । ଏ ଜ୍ଞାନ ତୋତେ ମୁଁ ବୁଝାଇ ॥ କଣ୍ଠକୁ ଶିଖା ଯାଏ । ସ୍ୱର୍ଗ ବୋଲିଣ ବେଦ କହେ ॥ କଣ୍ଠରୁ କଟି ଯାଏ ହୋଇ । ମର୍ତ୍ତ୍ୟ ବୋଲିଣ ବେଦ କହି ॥ କଟିରୁ ପାଦଯାଏ ଶୁଣ । ପାତାଳବୋଲି ହୋ ଅର୍ଜ୍ଜୁନ ॥ ଶୁଣ ତୁ ଦେହର ବିଚାର । ଯେଣୁ ତୋହର କାୟା ସ୍ଥିର ॥ ପାତାଳ ବରୁଣ ନଗର । ସମସ୍ତ ନାଗଙ୍କ ଘର ॥ ମର୍ତ୍ତ୍ୟରେ ଯେମନ୍ତ ବ୍ୟବସ୍ଥା । ଶୁଣ ପାଣ୍ଡବ ମହାରଥା ॥ ଗୁହ୍ୟରେ ଗଣେଶ ଯେ ବହି । ଅସୁର ଗୁରୁ ସେହିଠାଇଁ ॥ ଲିଙ୍ଗ ଚକ୍ରରେ

ଷଡ଼ାକ୍ଷର । ତହିଁରେ କାମେଶ୍ୱର ଘର ॥ କାମାକ୍ଷୀ ପକ୍ଷୀ ସେହୁଠାବର । ବସି ଯେ ଅଛୁ ସେ ସ୍ଥାନରେ ॥ ଦଶ ଅକ୍ଷର ନାଭି କହୁ । ବ୍ରହ୍ମା ନଗର ସେ ଅଟଇ ॥ ଶୁଣୁ ତୁ ହୃଦର ବଗୃର । ବସେ ତହିଁ ଦ୍ୱାଦଶାକ୍ଷର ॥ ଆପଣେ ପ୍ରଭୁ ଦାମୋଦର । ଲକ୍ଷ୍ମୀଙ୍କି ଘେନିଣ କୋଳର ॥ କଣ୍ଠରେ ଈଶ୍ୱର ରହଇ । ପାର୍ବତୀ ଘେନି ବହଳଇ ॥ ତହିଁ ଷୋଡ଼ଶାକ୍ଷର ରହେ । ବେନି ଦଳଟି ଥକାଶଏ ॥ ଚନ୍ଦ୍ର ସୂର୍ଯ୍ୟର ଏ ନଗର । ହଂସ ଭଜୁଛି ବେନାକ୍ଷର । ତହିଁ ଉପରେ ଅର୍ଦ୍ଧ ମାତ୍ରା । ମାତ୍ରା ଉପରେ ଠୂଳ ଚିତା ॥ ଠୂଳ ଉପରେ ଶୂନ୍ୟ ରହୁ । ଶୂନ୍ୟ ଉପରେ ଭ୍ରବଗ୍ରାହ୍ମ ॥ ସେଠାରେ ଜଗତ ଗୋସାଇଁ । ଅଷ୍ଟଦଳଟି ଯହିଁ ରହୁ ॥ ତହିଁ ଭିତରେ ଲୀଳା ମୋର । ଶୁଣ ହୋ ପାଣ୍ଡୁର କୁମର ॥ ଏମନ୍ତେ ଅଟଇ ଅଶେଷ ॥ ମୋର ବିଭୂତ ଲୀଳା ଶେଷ । କହଇ ବଳରାମ ଦାସ ॥ ସେ ବ୍ରହ୍ମପାଦେ ମୋର ଆଶ । ୨୫ ।

ଇତି ଶ୍ରୀ ବ୍ରାହ୍ମଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନସମ୍ବାଦେ ନାମ ସପ୍ତପଞ୍ଚାଶତୋଽଧ୍ୟାୟଃ ।

---

## ଅଷ୍ଟପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ପୁଣି ପଚାରଇ । ହେ ନାଥ ଯଦୁ କୁଳସାଇଁ ॥ ଅରିଭଞ୍ଜନ ଅଚ୍ୟୁତ । ତୁ ନାଥ ପ୍ରାଣ ପଞ୍ଚଭୂତ ॥ ଭୂମିରସଟି କେ ବୋଲଇ । କେମନ୍ତେ ଆକାଶ ସର୍ଜଇ ॥ ରସଙ୍କ ମଧ୍ୟେ ଭୂମିରସ । କେମନ୍ତେ ସର୍ଜଇ ଆକାଶ ॥ ଏ ବାକ୍ୟ କହ ଦାମୋଦର । ପୁରାଣ ପୁରୁଷ ଈଶ୍ୱର । ୫ । ଶ୍ରୀ ଭଗବାନୁବାଚ- ଅର୍ଜ୍ଜୁନ ବାକ୍ୟେ ଯଦୁବଂଶୀ । କହନ୍ତି ଅର୍ଜ୍ଜୁନକୁ ହସି ॥

ହେମାକାଶଂ ମହାକାଶଂ ଠୂଳଶୂନ୍ୟ ଚ ସଗ୍ରହଃ ।
ନଦନ୍ତ୍ୟା ମମ ବ୍ରହ୍ମ ବ୍ୟାପିତଂ ସଚରାଚରଂ ॥

ଅର୍ଜୁନ ଶୁଣ ତୁ ସନ୍ଦେଶ । କହିବା ତୋତେ ଭୂମିରସ ॥ ଅସ୍ଥି ବୀଜର ପରେ ହର । ଠୂଳ ଶୂନ୍ୟରେ ରସ ପୁର ॥ ଭୂମି ରସଟି ଜଳ କହି । ଅଦତ୍ୟ ଅଷ୍ଟମାସ ଯାଇ ॥ ତାହାର ଉତ୍ତୁ ସମସ୍ତରେ ଜଳ ଛାଡ଼ଇ ଏ ସଂସାରେ ॥ ସେ ଜଳେ ଜଗତଶୀତଳ । କୃଷକେ କୃଷି କର ଚଳ ॥ ଏଣୁକି ଜଳ ଭୂମିରସ । ଶୁଣ ସୁମନେ ପାଣ୍ଡୁ-ଶିଷ୍ୟ ।୧୨। ଦେହକୁ ଭୂମି ବୋଲି କହି । ଜୀବଟି ଭୂମିରସ କହି ॥ ଅନ୍ତୁର ଶୁଣ ତୁ ସନ୍ଦେଶ । କୃଷ୍ଣର ନାମ ଭୂମିରସ ॥ ମାତାଗର୍ଭରେ ଯେବେ ଥିଲି । ଭୂମି ରସଟି ଖାଉଥିଲି ॥ କହଇ ବଳରାମ ଦାସ । ଭୂମି ରସରେ ମୋର ଅଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଅଷ୍ଟପଞ୍ଚାଶତୋଽଧ୍ୟାୟଃ ।

—*—

## ଊନଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅରତ ଭଞ୍ଜନ କେଶବ । କହ ହେ ଭକତ ପ୍ରସ୍ତାବ ॥ ଅହେ ଗୋବିନ୍ଦ ଦାମୋଦର । ପଦ୍ମନୟନ ଗଦାଧର ॥ କୀଟ ପତଙ୍ଗ ଖଗ ମୃଗ । ସତ୍ସଙ୍ଗେ ହେଲେ ମୋକ୍ଷଯୋଗ ॥ କୀଟ ପତଙ୍ଗ କେ ହୋଇଲି । ଖଗ ମୃଗଟି କାହିଁ ଥିଲି ॥ କେଉଁ ସ୍ଥାନ-ରେ ସାଧୁଥିଲେ । ଏହାଙ୍କୁ କେମନ୍ତେ ତାରିଲେ ॥ ଏ ଅର୍ଥ କହ ଭଗବାନ । ନମସ୍ତେ ଅରତଭଞ୍ଜନ ॥ ଶ୍ରୀ ଭଗବାନୁବାଚ— ଅର୍ଜୁନ ବାକ୍ୟେ ଜନାର୍ଦ୍ଦନ । କହନ୍ତି ଭୂଗୋଳ ବିଧାନ ॥ ଏବେ କହିବି ମୁହିଁ ତୋତେ । ଶୁଣ ତୁ ସାବଧାନ ଚିତ୍ତେ ॥ କୀଟ ଯେ ନୟନେ ବସଇ । ପତଙ୍ଗବୋଲି ମୁଖ କହି ॥ ଖଗ ତୋ ନାସିକା

ପ୍ରମାଣ । ମୃତ ଯେ ଅଛଇଁଟି ଜଣ୍ତ ॥ ସାଧୁ ପୁରୁଷ ଯେ ବୋଲଇ । ପୁଣି ଅର୍ଜୁନ ଦେବା ଇହ ॥ ସେ ଜ୍ୟୋତିବ୍ରହ୍ମ ସାଧୁ ଜାଣ । ଏହାଙ୍କୁ କରନ୍ତି କାରଣ ॥ ପ୍ରଳୟ ଯେତେଦିନ ହୋନ୍ତି । ଏ ସବ ଜ୍ୟୋତିରେ ମିଶନ୍ତି ॥ ଏହାଙ୍କ କହି ଗୋଚରାର୍ଥ । ଏବେ କହିବା ବାହ୍ୟମତ ॥ ନାମବ୍ରହ୍ମଟି ସାଧୁ କହି । ସେ ନାମ ଭଜ ସାଧୁ ପାଇ ॥ ବୃକ୍ଷ ପାଷାଣ ତରୁ ତୃଣ । ସୃଷ୍ଣନ୍ତେ ହୁଅନ୍ତି କାରଣ ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ୱିନଷଷ୍ଟିତମୋଽଧ୍ୟାୟଃ ।



## ଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ପୁଣି ପଚାରିଲେ । ସଂଶୟ ମନରେ ରହିଲା ॥ ଅର୍ଜୁନ ପଚାରଇ ଭେଦ । ଉଦ୍ଧବେ ଦେଲେ ରତ୍ନପାଦ ॥ ରତ୍ନପାଦୁକାର ଯେ ଅର୍ଥ । ମୋତେ କହିବା ଜଗନ୍ନାଥ ॥ ତେବେ ଏ ସଂସାରୁ ତରିବ । ଏକାନ୍ତେ କୃଷ୍ଣଙ୍କ ଲଭିବ ॥ ତାର ହୃଦୟ-କଥା ହରି । ଜାଣିଲେ ମୁକୁନ୍ଦ ମୁରାରି ।୫। ଶ୍ରୀ ଭଗବାନୁବାଚ—

ପାଦପଦ୍ମ ମୁଖପଦ୍ମ ଚକ୍ଷୁ ପଦ୍ମାଙ୍ଗ ସଂସ୍ଥିତା ।
ହୃଦପଦ୍ମଞ୍ଚ କର୍ଣ୍ଣଂ ତୁ ଷଡ଼ପଦ୍ମ ସୁପ୍ରକାଶିତାଂ ।

ଶୁଣ ଅର୍ଜୁନ ମନଦେଇ । ଗୁପତ କଥା ତୋତେ କହି ॥ ତୁ ଯେତେ କଥା ପଚାରିଲୁ । ସଂଶୟ କଥା ଯେ ଚେତିଲୁ ॥ ସେ କଥା ଶୁଣ ମନସ୍ଥିରେ । କହିବା ଯୁଗାନ୍ତ ବିସ୍ତାରେ ॥ ଉଦ୍ଧବ ପଛେ ଚଳିଯାନ୍ତେ । ଦେହକୁ ପାଇଲା ସେ ପଥ ॥ ଦେହକୁ ଧରିଥିଲା ଯଡ଼ । ତମ୍ଭା ଧାଅନ୍ତେ ଦେହ ଛାଡ଼ ॥ ତମ୍ଭାକୁ ଧରିଥିଲା ସଡ଼ଙ୍ଗ ।

ଗୌପ୍ୟ ପାଇଲ ଯାଇ ବେଗେ । ପୁଣ ସେ ଗୌପ୍ୟ ଥିଲ ଧରି । ସୁବର୍ଣ୍ଣ ପାଇ ଦୂର କରି ॥ ସୁବର୍ଣ୍ଣ ପାଇ ନେଉଥିଲ । ଘାସ ପାଆନ୍ତେ ଛାଡ଼ିଦେଲ । ଘାସକୁ ବାଟେ ଛାଡ଼ିଗଲ । ପରେଶ ପ୍ରସ୍ତର ପାଇଲ । ପରଶ ପରମର ପାଦ । ଶୂନ୍ୟ ଶବଦ ଜ୍ୟୋତଭେଦ । ସେହି ଶବଦକୁ ଧଇଲ । ଗ୍ରୀଷ୍ମ ବରଷା ସେ ବଞ୍ଚିଲ । ଯିଏ ଯେ ସୁବର୍ଣ୍ଣକୁ କହି । ସୁବର୍ଣ୍ଣ ଶୂନ୍ୟ ପାଦ ହୋଇ । ସେହି ମଣିକୁ ଭେଟଇ ॥ ମହାନିଶିକାରେ ମଜଇ । ଉଦ୍ଧବ ଯେଉଁ ପାଦନେଲ । ସେ ପାଦ ଶରଣେ ପୋ ବହିଲ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ ॥ ୬୦ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଷଷ୍ଟିତମୋଽଧ୍ୟାୟଃ ।



## ଏକଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । ଆହୁରି କଥାଏ ପୁଚ୍ଛଇ ॥ ସାର ଉଦ୍ଧରି ଦାମୋଦର । ଉଦ୍ଧବେ ଦେଲେ ସୁଧାଧାର । ଏ ଅର୍ଥ କହ ମୋତେ ଫେଇ । ନମସ୍ତେ ପ୍ରଭୁ ଭାବ-ଗ୍ରାହୀ । ଶ୍ରୀ ଭଗବାନୁବାଚ—କହନ୍ତି ଭୂଗୋଳ ବିସ୍ତାର । ଅର୍ଜୁନ ବାକ୍ୟେ ଚକ୍ରଧର ॥ ଶୁଣ ହୋ ପାର୍ଥ ମନ ଦେଇ । ମୋ ପାଦପଦ୍ମ ଦେବା କହି ॥ ମୋ ପାଦପଦ୍ମ କ୍ଷୟ ହୋଇ । ତହିଁରେ ଷଡ଼ପଦ୍ମ ରହି ॥ ସେ ପାଦପଦ୍ମ ବିନ୍ଦୁ କହି । ସେ ବିନ୍ଦୁ ଅମୃତ ଝରଇ । ସେ ମକରନ୍ଦ ସୁଧାଧାର । ଉଦ୍ଧବେ ପିଇଲେ ନିରନ୍ତର ।

ଯଃ ପଦ୍ମ ମକରନ୍ଦସ୍ୟ ଷଡ଼୍ ଚକ୍ର ସୁପ୍ରକାଶିତଃ ।
କ୍ଷୁଧାତୃଷା ଭୟଂ ନାସ୍ତି ମମ ନାମ ପ୍ରକାଶିତଃ ॥

ସେ ପଦ୍ମସାର ଧାର ବହ । ସେ ମକରନ୍ଦ ଧାର କହ ॥ ପଦ୍ମ-ରେ ପାଦ ଯୁକ୍ତ ହୋଇ । ଏଣୁଟି କୃଷ୍ଣ ପାଦ କହ ॥ ଶୁଣ ଅର୍ଜୁନ ଜ୍ଞାନ ସାର । ଏ ଷଠ ପଦ୍ମର ବିଚାର ॥ ବାଳ ମୁକୁନ୍ଦ ରୂପେ ହର । ସେ ମକରନ୍ଦ ପାନ କର ॥ ପ୍ରତାପୀ ବୀର ଶୁଣି ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକଷଷ୍ଠିତମୋଽଧ୍ୟାୟଃ ।

—※—

## ଦ୍ୱିଷଷ୍ଠିତମ ଅଧ୍ୟାୟ

ଅର୍ଜୁନ ଉବାଚ – ଅର୍ଜୁନ ଶିରେ ଦେଇ କର । ବୋଲଇ ଶୁଣ ଦାମୋଦର ॥ ଅଜ୍ଞାନ ମୋହେ ମୁଁ ପଡ଼ିଲି । ତୋ ପଦ୍ମପାଦ ପାଶୋରିଲି ॥ ତୋହର ନାମ ନାବେ ବସି । ତରିବ ଘୋର କଳରାଶି ॥ ଅଜାତ ପକ୍ଷୀର ଚରିତ । କହ ହେ କମଳାର କାନ୍ତ ॥ ଅଜାତ ପକ୍ଷୀ କାହିଁ ଥିଲା । ସେ ପୁଣି ମାତାକୁ ଡାକିଲା ॥ ତାହାର ମାତା ପିତା କାହିଁ । ତାର ଆହାର କେଉଁଠାରେ ॥ ଏ କଥା କହ ପଦ୍ମନାଭ । ତୋର ଚରଣେ ବଡ଼ ଲୋଭ ॥ ଶ୍ରୀ ଭଗବାନୁବାଚ – ଅର୍ଜୁନ ବଚନେ ମାଧବ । କହନ୍ତି ଭୂଗୋଳ ପ୍ରସ୍ତାବ ॥

ପରମା ମାତୃକା ରାଧା ରାଧାୟାଂ ପ୍ରକୃତ ସ୍ଥିତା ।
ବ୍ରହ୍ମାଣ୍ଡ କୋଟି ମଣ୍ଡଳାଞ୍ଚ ରାଧା ଅଙ୍ଗ ପ୍ରକାଶିତା ॥

ଶୁଣ ଅର୍ଜୁନ ମନଦେଇ । ଗୁପତ ଜ୍ଞାନ ଏ ଅଟଇ ॥ ଅଜାତ ଶୂନ୍ୟେ ଜାତ ହୋଇ । ଶୂନ୍ୟରେ ଡିମ୍ବକେ ପାରଇ ॥ ଡିମ୍ବ ପାରଣି ମାତା ଗଲା । ରାଅ ଲୀଳାରେ ଗୁପ୍ତ ହେଲା ॥ ମାତା ପିତାଙ୍କୁ ସେ ନ ଦେଖି । ଶୂନ୍ୟରେ ରାଅ ନାମ ଡାକି ॥ ରାଅ ତାହାର ମାତା

ହୋଇ । ମଅଣ୍ଟି ବୋଲି ତାକୁ କହି ॥ ନୀଳଜୀମୂତ ଦେହ ତାର
ନାତ୍ୟଗନ୍ଧରେ ତାର ଘର ॥ ସଖା ତାହାର କେହି ନାହିଁ । ସଖା
ତା ପଞ୍ଚଭୂତ ହୋଇ ॥ ଏମନ୍ତ ମହିମା ଯାହାର । ଶୁଣ ଅର୍ଜୁନ
ମହାବୀର ॥ ସ୍ୱଅ ଘୁଡ଼ ସେ ମଅରେ ମିଶେ । ମଅଣ୍ଟି ମିଶାଇ
ଆକାଶେ ॥ ପଞ୍ଚଭୂତରେ ଜନ୍ମ ହୋଇ । ପଞ୍ଚଭୂତରେ ଶୂନ୍ୟେ
ଯାଇ ॥ ଅଜାତ ପକ୍ଷୀ ଜୀବହୋଇ । ତାହାର ଜନ୍ମ ମୃତ୍ୟୁ ନାହିଁ ॥
କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ । ୨୦ । ଇତି
ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ
ଦ୍ୱିଷଷ୍ଠିତମୋଽଧ୍ୟାୟଃ ।

—※—

## ତ୍ରିଷଷ୍ଠିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରଇଁ ମୁହିଁ ॥ ପୂର୍ବେ ଯେ କପିଳ ନଗରେ । କନ୍ୟାଏ ସୁବର୍ଣ୍ଣ ଆକାରେ ॥ ସେ କନ୍ୟା ବିଧବା ହୋଇଲା । ତା ପତି ବସି ଶୋକ କଲା ॥ ଏ କଥା କହ ନାଥ ମୋତେ । ସଂଶୟ ଫେଡ଼ ମୋର ଚିତ୍ତେ ॥

ଶ୍ରୀ ଭଗବାନୁବାଚ

ବ୍ରହ୍ମବନ୍ଧୁ ଶିବମେକଞ୍ଚ ବିଅଞ୍ଚ ଯେନ ସମ୍ଭବ ।
ଅାଦଶକ୍ତ ଭୟଂ ନାସ୍ତି ପାର୍ବତୀପତି ଈଶ୍ୱର ॥

ଶୁଣ ଅର୍ଜୁନ ହେତୁ ଦେଇ । କହିବା ଭୂଗୋଳକୁ ଫେଇ ॥ ପ୍ରଥମେ ବ୍ରହ୍ମା ବିଷ୍ଣୁ ଶିବ । ନିରାକାର ରୂପେ ସମ୍ଭବ ॥ ପ୍ରଥମେ ଜଳଧି ମନ୍ଥିଲେ । ସେଠାରୁ ବିଷ ଜାତ ହେଲେ ॥ ଶିବ ଭକ୍ଷିଣ ମୋହିଗଲେ । ତା ଦେଖି ପାର୍ବତୀ କାନ୍ଦିଲେ ॥ କାନ୍ଦଣ କଙ୍କଣ କାଢ଼ିଲେ । ବିଧବା ଅବସ୍ଥା ହୋଇଲେ ॥ ତକ୍ଷଣେ ଶିବ ଚେତା ପାଇ । ସ୍ୱେଦନ କଲେ ଦେବ ସାଇଁ ॥ ଏ ପରମାର୍ଥର ବିସ୍ତାର ।

କହିବା ଶବ୍ଦାର୍ଥ ସାର ॥ କପିଳ ନଗ୍ର ଦେହ ଜାଣ । କଳ୍ପନା କନ୍ୟାଟି ପ୍ରମାଣ ॥ ଯହୁଁ ପ୍ରଳୟ କାଳହେଲା । ଜୀବ ଶରୀରୁ ଛାଡ଼ିଗଲା ॥ ଛାଡ଼ନ୍ତେ ଏ ଜୀବ ଚରମ । ଦେହ ହୋଇଲା ସର୍ବ ଶୂନ୍ୟ ॥ ଜୀବ ଯେ ଛାଡ଼ିଲା ତକ୍ଷଣି । ପରମ କରଇ ବେଦନ ॥ କଳ୍ପନା ଚକ୍ଷୁରେ ଯେ ଥିଲା । ଲୋତକ ଧାର ସେ ବହିଲା ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରିଷଷ୍ଠିତମୋଽଧ୍ୟାୟଃ ।

---

## ଚତୁଃଷଷ୍ଠ ତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ବଚନ । ଶୁଣ ହେ ପ୍ରଭୁ ଭଗବାନ । ଶ୍ରୀ ଭାଗବତ ସ୍କନ୍ଧ ହେଲା । ମହା ପୁରାଣ ବୋଲାଇଲା ॥ ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସଂଶୟ ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜୁନ ତୋଷହୋଇ ॥ ତୋତେ ମୁଁ ଦେଉଅଛି କହି ॥ ମାତାର ପଦ ଗୋଟି ଥିଲା । ତହିଁରେ ବାଦ ପୂରାଇଲା ॥ ମହା ପୁରାଣ ତହୁଁ ହୋଇ । ବ୍ରହ୍ମାଣ୍ଡ-ଭୂଗୋଳରେ କହି ॥ ଭଣଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଚତୁଃଷଷ୍ଠିତମୋଽଧ୍ୟାୟଃ ।

---

## ପଞ୍ଚଷଷ୍ଠିତମ ଅଧ୍ୟାୟ

ଅର୍ଜୁନ ଉବାଚ - ଅର୍ଜୁନ ବୋଲେ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ ॥ କୌସ୍ତୁଭମଣି କେଉଁ ହେଲା । ଜଳକେ

କାହୁଁ ଅଣିଦେଲ ॥ ଶ୍ରୀ ଭଗବାନୁବାଚ – ଅର୍ଜୁନ ବାକ୍ୟେ ଚିତ୍ତଧର । କହନ୍ତ ଭୂଗୋଳ ବିସ୍ତାର ॥ ଉଦ୍ଧବ ଏକଦିନକରେ । ବନେ ପଶିଲ ମୃଗୟାରେ ॥ ବୁଲଇ ଚହନ କାନନ । ପଡ଼ିଛି କୌସ୍ତୁଭ ରତନ ॥ କଣ୍ଠଠାରୁ ତାହାର ନାହିଁ । ମୁଣ୍ଡ ତା ରାମ ନାମ ଗାଇ ॥ ଉଦ୍ଧବ ମୃଗପ୍ରାୟ ମଣି । ବାଣ ବିନ୍ଧିଲ ଗୁଣଟାଣି ॥ ସେ ବାଣ ବେଗେ ଚାଲି ଗଲା । ପଡ଼ିଛି ମୁଣ୍ଡକୁ ଦେଖିଲ ॥ ତକ୍ଷଣେ ବାହୁଡ଼ିଲ ବାଣ । କହେ ଉଦ୍ଧବକୁ ବଚନ ॥ ମୃଗ ଶୂକର ନୁହେଁ କିଛି । ମୁଣ୍ଡ ଗୋଟିଏ ପଡ଼ିଅଛି ॥ ରାମନାମ ସେ ମୁଣ୍ଡ ଡାକ ॥ ଉଦ୍ଧବ ମୁଣ୍ଡକୁ ନିରେଖି । ତକ୍ଷଣେ ମୁଣ୍ଡକୁ ଧଇଲ । ସୁବର୍ଣ୍ଣ-ସୂତ୍ରରେ ଗୁନ୍ଥିଲ ॥ ସେ ମୁଣ୍ଡ କଉସ୍ତୁଭ ମଣି । ଅମ୍ଭ ଗଳାରେ ଲମ୍ବେ ପୁଣି । ସେ ମନ୍ଦିଥିଲେ କ୍ଷୁଧା ତୃଷା । ନିରାକାର ଭବନେ ବସା ॥ ମଣି ଦର୍ଶନେ ମୋର ଆଶ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚଷଷ୍ଠିତମୋଽଧ୍ୟାୟଃ ।

—※—

## ଷଟ୍‌ଷଷ୍ଠିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ହୋଇ କୃତକୃତ । ତୁମ୍ଭ ଗଳାରେ ସେ ଲମ୍ବିତ ॥ କାହାକୁ ବୈଜୟନ୍ତୀ କହ । ପୁଚ୍ଛଇ କୃଷ୍ଣମୁଖ ଚାହିଁ ॥ ସେ ମାଳା ଯେତେକ ଚରିତ । ତୁମ୍ଭ ଗଳାରେ ସେ ଲମ୍ବିତ ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ମନ ଦେଇ । ଗୋଲକପୁରେ ନିତ୍ୟରହି ॥ ବିରାଟ ନିଜସ୍ଥାନ ସେହି । ନିତ୍ୟେ ତହିଁରେ ବିଶ୍ରାମଇ ବିରାଟ ଶରୀର ବିସ୍ତାର । ଚଉଦ ମାଳା ତା ଗଳାର ॥ ଅମ୍ଭେ ତାଠାରୁ ତହୁଁ ଜାତ । ସେ ନିରାକାର ଅମୃତାତ ॥ ତହୁଁ ଯେତେକ ସଖୀଛନ୍ତି । ବୈଜୟନ୍ତୀ ସେ ଅଟନ୍ତି ॥ ଜାତ ବିରବା ବେଳେ

ସେହ୍ନ । ତାଙ୍କ ଗଳାରୁ ମାଳା ଦେଇ । ଶୂନ୍ୟରେ ବାନ୍ଧୁ ଦେ ଗଲିଲ ॥ ବ୍ରହ୍ମ ଶବ୍ଦରେ ସେ ମିଶିଲ । ବ୍ରହ୍ମ ନାମଟି ମାଳାହୋଇ ॥ ସେ ମାଳା ଜଗତେ ସଞ୍ଚରି । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଟ୍‌ଷଷ୍ଟିତମୋଽଧ୍ୟାୟଃ ।



## ସପ୍ତଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ବିନୟରେ । ପଚାରି କୃଷ୍ଣର ପୟରେ ॥ ଯେ ପୂର୍ବକାଳେ ଅବତାରେ । ଧରିଲେ ଶୂକର ରୂପରେ ॥ ପୃଥିବୀ ଦନ୍ତରେ ଧରିଲେ । କାହା ଉପରେ ଉଭା ହେଲେ । ଏ ବାକ୍ୟ କହ ଦାମୋଦର । ପୃଥିବୀ ତୋ ଦନ୍ତେ ସୁନ୍ଦର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନ ଦେଇ । କହିବା ଭୂଗୋଳକୁ ଫେରି ॥ ଯେ କାଳେ ଶୂକର ଶରୀର । ପୃଥିବୀ ଦନ୍ତେ ସେ ସୁନ୍ଦର ॥ ଶିଶିର ଦୁର୍ବା ଅଗ୍ରେ ଯେହ୍ନେ । ମୋହର ରୂପ ଅଟେ ତେହ୍ନେ ॥ ନୀଳବର୍ଣ୍ଣଟି ଅଟେ ଦେହେ । ମୋ ରୂପ ତେହ୍ନେ ଶୋଭାପାଏ ॥ ଶିଶିର ଟୋପାର ଆକାର । ବ୍ରହ୍ମାଣ୍ଡ ମୋ ଦନ୍ତ ଶିଖର ॥ ଅନନ୍ତ ଆସନ ଉପରେ । ଉଭା ମୁଁ ହୋଇଲି ନିଷ୍ଟଳେ ॥ ସକଳ ମୋହର ସଂସାର । ଅନନ୍ତ ମୋର ଗର୍ଭଧର ॥ କହଇ ବଳରାମ ଦାସ ॥ ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତଷଷ୍ଟିତମୋଽଧ୍ୟାୟଃ ।



## ଅଷ୍ଟଷଷ୍ଠିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ମନେ ବିଚାରଇ । ସଂଶୟ ଫେଡ଼ି ପଚାରଇ । ହେ ପ୍ରଭୁ ତୁମ୍ଭର ପୟର । ଲମ୍ବ ହୋଇଛି କେଉଁ ଠାର । ସେ କଥା କହିବା ବିସ୍ତାର । କୁକର୍ମମାନ ଦୂର କର । ଶ୍ରୀ ଭଗବାନୁବାଚ—ଜାଣିଲେ ପ୍ରଭୁ ଚକ୍ରଧର । କହିଲେ ଶ୍ରୀରଙ୍ଗ ଅଧର । ବୋଇଲେ ଶୁଣ କୁନ୍ତୀସୁତ । ଶୁଣିଲ ହୃଦୟ ବାରତ । ମନରେ ଭୟ ତୁ ନ କଲୁ । ସଂଶୟ ଫେଡ଼ି ତୁ ପୁଚ୍ଛିଲୁ । ୬ । ବୋଇଲୁ ତୁମ୍ଭର ପୟର । ଲମ୍ବ ହୋଇଛି କେଉଁଠାର । ସେକଥା କହିବା ବିଚାର । କୁକର୍ମମାନ ଦୂରକର । ଯେ କାଳେ ବାମନ ମୂରତି । ନାଭିରୁ ପାଦ ଉତପତି । ସେ ପାଦ ଆକାଶକୁ ଗଲା । ବ୍ରହ୍ମା ଯେ ଗଙ୍ଗାକୁ ଢାଳିଲା । ସେ ଗଙ୍ଗା ନଖ କୋଣେ ରହି । ତେଣୁ ମୋ ପାଦ ଲମ୍ବ ହୋଇ ।୧୧। ଗୁପତ ବ୍ରହ୍ମା ଏ ବୋଲଇ ତିନି ଚରଣ ମୋର ହୋଇ । ଦୁଇ ପାଦଟି ଏ ମୋହର । ମଧ୍ୟ ପଦଟି ଯେ ଉତର । ଶୂନ୍ୟରୁ ବିନ୍ଦୁ ଯେ ଖସିଲା । ସେହିଟି ଲମ୍ବ ପାଦ ହେଲା । ୧୪ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୨୫ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ ନାମ ଅଷ୍ଟଷଷ୍ଠିତମୋଽଧ୍ୟାୟଃ ।

---

## ଊନସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ । ୧ । ପୁଣ୍ୟ କରିବ ପୁଣ୍ୟ କାଳେ । ନିଷେଧ ନ କରିବ ଢାଳେ । ପୁଣ୍ୟକାଳଟି କେଉଁଟଇ । ନିଷେଧ କେଉଁକେ ନ କରଇ । ଏ ଜ୍ଞାନ କହ ଦଇତାରି । ଶୁଣିଲେ ଯିବି ମୁଁ ନିସ୍ତରି ।

ଶ୍ରୀ ଭଗବାନୁବାଚ—ଅର୍ଜୁନ ବଚନେ ମାଧବ । କହନ୍ତି ଭୂଗୋଳ ପ୍ରସ୍ତାବ । ୫ । ସ୍ତ୍ରିଗ୍ଣଙ୍କ ରଜୋବତୀ କାଳେ । ପୁଣ୍ୟ କରିବ ସେହି ବେଳେ ॥ ଅନ୍ୟ ଦିବସେ ନ ଛୁଇଁବ । ବ୍ରହ୍ମବଧ ଦୋଷଲଭିବ ॥ ସେ ପୁଣ୍ୟକାଳେ ପୁଣ୍ୟକଲେ । ତହୁଁ ପୁରୁଷ ହୁଏ ଭଲେ । ୮ । ଅନ୍ୟ ଦିବସେ ବ୍ୟର୍ଥ ଯାଇ । ତେଣୁ ଯେ ପାତକ ହୁଅଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଊନସପ୍ତତିତମୋଽଧ୍ୟାୟଃ ।

— ※ —

## ସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଶୁଣି ଅର୍ଜୁନ ପଚାରଇ । କହ ହେ ବ୍ରହ୍ମାଣ୍ଡ ଗୋସାଇଁ । ୧ । ଶଶାଙ୍କ ମୁଣ୍ଡେ ଶୃଙ୍ଗଜାତ । ବନ୍ଧ୍ୟା ଯେ ପ୍ରସବଇ ସୁତ ॥ ଏ ଅର୍ଥ କହ ମୋତେ ଫେଡ଼ି । ନମସ୍ତେ କମଳାର ସାଇଁ ॥ ବନ୍ଧ୍ୟାଟି କେଉଁ ବୋଲାଇଲା । ସୁତ କେମନ୍ତେ ପ୍ରସବିଲା ॥ ଶ୍ରୀ ଭଗବାନୁବାଚ—ଶଶାଙ୍କ ବୋଲି ଯାହା କହି । ଜ୍ୟୋତି ରୂପଟି ସେ ବୋଲାଇ ॥ ବିକୁଣ୍ଠ ପରେ ଜ୍ୟୋତି ଥାଇ । ଶଶାଙ୍କ ଶୃଙ୍ଗ ସେ ବୋଲାଇ । ୬ । ଚକ୍ଷୁ ଉପରେ ବିଜେ କରି । ସେହିଟି ବନ୍ଧ୍ୟାରୂପ ଧରି ॥ ଜନ୍ମ ମରଣ ତାର ନାହିଁ । ସ୍ତ୍ରିଗ୍ଣ ପୁରୁଷ ସେ ନୁହଇଁ ॥ ପରମ ପୁରି ବୋଲି ଜାଣ । ବ୍ରହ୍ମାଣ୍ଡ କରଇ ଭିଆଣ ॥ କେବଳ ଥାଇ ଜନ୍ମ ନାହିଁ । ଏଣୁଟି ବନ୍ଧ୍ୟା ବୋଲି କହି ॥ କହଇ ବଳରାମ ଦାସ । ସୁଜନେ ନ ଘେନିବ ଦୋଷ । ୧୧ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ସପ୍ତତିତମୋଽଧ୍ୟାୟ ।

—※—

# ଏକସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବିନୟ ବଚନେ । କହଇ କୃଷ୍ଣ ସନ୍ନିଧାନେ । ୧ । କଥାଏ ପଚ୍ଚରିବି ତହିଁ । ଫେଡ଼ିବ ସଂଶୟ ଗୋସାଇଁ । ୨ । କର୍ମ ସରିଲେ ଫଳ କ୍ଷୟେ । ଲଭଧ କ୍ଳେଶ ମାନ ରହେ । ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ । ୪ । ଶ୍ରୀ ଭଗବାନୁବାଚ—ଅର୍ଜ୍ଜୁନ ବାକ୍ୟେ ଦାମୋଦର । କହନ୍ତି ଭୂଗୋଳ ବିସ୍ତାର । ଶୁଣ ଅର୍ଜ୍ଜୁନ ମନ ଦେଇ । ବ୍ରହ୍ମାଣ୍ଡ-ଭୂଗୋଳ କହଇ । ଜୀବକୁ କର୍ମବୋଲି କହି । ତାହା ସରିଲେ ଫଳ ନାହିଁ । ଜୀବ ପରମ ଫଳ ହୋଇ । କର୍ମ ସରିଲେ ନାଶ ଯାଇ । କ୍ଳେଶ ବୋଲନ୍ତେ ଦେହ କହି । ଏ ଦେହ ମାଟିରେ ମିଶଇ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ । ୧୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଏକସପ୍ତତିତମୋଽଧ୍ୟାୟଃ ।

---

# ଦ୍ୱିସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବିନୟ ଭାବରେ । ପଚାରଇ କୃଷ୍ଣର ପୟରେ । କଥାଏ ପଚ୍ଚରିବି ମୁହିଁ । ଫେଡ଼ିବ ସଂଶୟ ଗୋସାଇଁ । ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟଭାବ ବହି । ୩ । ବୃକ୍ଷର ଫଳ ଯେ ଭୁଞ୍ଜିଲା । କେମନ୍ତେ ଜଳରେ ପଡ଼ିଲା । ଏ କଥା କହ ଦଇତାରି । ନମସ୍ତେ ମୁକୁନ୍ଦ ମୁରାରି । ଶ୍ରୀ ଭଗବାନୁବାଚ—ଭୃତ୍ୟ ବଚନେ ଚକ୍ରଧର । କହନ୍ତି ଭୂଗୋଳ ବିଚାର । ଦେହକୁ ବୃକ୍ଷ ବୋଲି ଜାଣ । ଜୀବ ପରମ ଦୁଇ ପୁଣ । ଏ ବୃକ୍ଷେ ବେନି ପକ୍ଷି ଥାନ୍ତି । ଏକ ଅପରେକ ନ ଦେଖନ୍ତି । ପାପ ଫଳଟି ଯେ

ଅଟଇ । ଜୀବ ତା ଅବଶ୍ୟ ଭୁଞ୍ଜଇ ॥ ପରମ ଥାଇ ସାକ୍ଷୀ ରୂପେ । ଉଦାସୀ ମତେ ସର୍ବେ ଦେଖେ ॥ ଜୀବଟି ପାପଫଳ ପାଇ ମାୟା-କାଳରେ ସେ ପଡ଼ଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୧ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱିସପ୍ତତିତମୋଽଧ୍ୟାୟଃ ।

---

## ତ୍ରିସପ୍ତତିତମୋଽଧ୍ୟାୟ

ଅର୍ଜ୍ଜୁନ ଉବାଚ—ବୋଲେ ଅର୍ଜ୍ଜୁନ ଶୁଣ ହରି । କହିବା ଭୂଗୋଳ ବିସ୍ତାରି ॥ ଯଦୁ ରାଜନ ଅବଧୂତ । ଏ ବେନି ଜନଙ୍କ ଚରିତ ॥ ଯଦୁ ରାଜନ କେହ୍ନ ପୁଣ । ଅବଧୂତଟି କେ ପ୍ରମାଣ ॥ ଏ ଜ୍ଞାନ କହ ନାରାୟଣ । ନମସ୍ତେ କମଳ ଲୋଚନ ॥ ଶ୍ରୀ ଭଗବାନୁବାଚ ଶୁଣ ଭକତ ସାମରଥା । କହିବା ତୋତେ ତତ୍ତ୍ୱ କଥା ॥ ଯଦୁରାଜନ ଜୀବ ହୋଇ । ପରମ ଅବଧୂତ କହି ॥ ମୀନଟି ଜୀବ ବୋଲି ଜାଣ । ଚୈତନ୍ୟ ପରମ କାରଣ ॥ ଚୈତନ୍ୟ ମନକୁ ଯେ କହି । ଶୁଣ ହେ ଯୁଧିଷ୍ଠିର ଭାଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରିସପ୍ତତି-ତମୋଽଧ୍ୟାୟଃ ।

---

## ଚତୁଃସପ୍ତତିତମୋଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲେ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ ॥ ଯାବତ ଚନ୍ଦ୍ର ସୂର୍ଯ୍ୟ ଦଶେ । ତାବତ ଏ ବ୍ରହ୍ମ

ପ୍ରକାଶେ ॥ ଏ ଅର୍ଥ କହ ଭଗବାନ । ତୋ ପାଦ ଜଗତ କାରଣ ଶ୍ରୀ ଭଗବାନୁବାଚ-କହନ୍ତି କମଳାର ବର । ଶୁଣ ହେ ଭକତ ମୋହର ॥ ରଜଟି ଚନ୍ଦ୍ର ବୋଲି କହି । ସୂର୍ଯ୍ୟ ରୂପଟି ବନ୍ଦ୍ ହୋଇ ॥ ରଜରେ ବୀଜ ଯୁକ୍ତ ହେଲା । ଏଣୁ ସେ ସୃଷ୍ଟି ପ୍ରକାଶିଲା କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଚତୁଃସପ୍ତତିତମୋଽଧ୍ୟାୟଃ ।

— ✲ —

## ପଞ୍ଚସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ପୁଣି ପଚାରଇ ଅର୍ଜୁନ । ହେ ନାଥ ଅଗତି ଭଞ୍ଜନ ॥ ସେ ଦେଶେ କୃଷ୍ଣ ମୃଗ ସାର ନ ଦେଖି ବିଷ୍ଣୁ ଭକ୍ତ ନର ॥ ସେ ଦେଶ ପତିତ ହୋଇଲା । ଫଣୀଏ ଫେଡ଼ି କହ ବଳା ॥ ପତିତ ଦେଶ କେ ବୋଲଇ । କୃଷ୍ଣ-ମୃଗଟି କେ ଅଟଇ ॥ ଅର୍ଜୁନ କହ ଫେଡ଼ିକରି । ଶୁଣି ମୁଁ ଜ୍ଞାନେ ଯିବି ତରି ॥ ଶ୍ରୀ ଭଗବାନୁବାଚ—ବୋଲନ୍ତି ଜଗତ ଜୀବନ । ଶୁଣ ଭକତ ଦେଇ ମନ ॥ ଦେଶ ଯେ ମାତା ପଦ୍ମ କହି । କୃଷ୍ଣ ପକ୍ଷଟି ସେ ବୋଲଇ ॥ ତହିଁର ସଙ୍ଗ ଯେ କରଇ । ତାହାକୁ ପତିତଟି କହି ॥ ଯହୁଁ ପଦ୍ମରେ ବୁହାଇଲା । ସେ ଦେଶ ପତିତ ହୋଇଲା । ସେ ଦିନ ପଦ୍ମଫୁଟି ଥାଇ । ଶୁକ୍ଳପକ୍ଷଟି ସେ ବୋଲଇ ॥ ସେ ଦିନ ରତି ଯେବେ କରି । ସେ ଦେଶେ ସୁକର୍ମ ଆଚରି ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚସପ୍ତତିତମୋଽଧ୍ୟାୟଃ ।

—✲—

## ଷଡ଼ସପ୍ତତିତମୋ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ମନେ ପଡ଼ିଲଇଁ ॥ ଗ୍ରହଣେ ରବି ଚନ୍ଦ୍ର ଯେବେ । ସର୍ବେ ପବିତ୍ର ହୋନ୍ତି ତେବେ ॥ ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ॥ ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ଭାବଗ୍ରାହୀ । ମାତାର ପଦ୍ମ ଫୁଟିଥାଇ ॥ ଗ୍ରହଣ କାଳ ଯେ ଅଟଇ । ଶୁଣ ଅର୍ଜ୍ଜୁନ ମନ ଦେଇ ॥ ଚନ୍ଦ୍ର ଯେ ମାତା ରଜ ହେଲା । ବୀଜ ଅଟଇ ସୂର୍ଯ୍ୟ କଲା ॥ ରଜ ବୀଜର ଯୁକ୍ତ ହେଲା । ସର୍ବ ପବିତ୍ର ତେଣୁ କଲା ॥ ଭଣଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଡ଼ସପ୍ତତିତମୋଽଧ୍ୟାୟଃ ।

—*—

## ସପ୍ତସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚ୍ଛୁରବି ମୁହିଁ ॥ ବାମ ପାର୍ଶ୍ବେ ଗୁରୁ ଥାଇ । ଦକ୍ଷିଣେ ଅଗ୍ରଜ ବସଇ ॥ ଏ ବେନି କରି ନମସ୍କାର । ଗଙ୍ଗା ଯମୁନା ଗଣେଶ୍ୱର ॥ ଗଙ୍ଗା ଯମୁନା କେ ବୋଲାଇ । ଗଣେଶ୍ୱରଟି କେ ହୁଅଇ ॥ କେମନ୍ତେ କର ନମସ୍କାର । କହ ହେ କମଳାର ବର ॥ ଗୁରୁ ଯେ କେ ପୁଣ ଅଟନ୍ତି । ଅଗ୍ରଜ କେ ଅବା ହୁଅନ୍ତି ॥ ନିଶ୍ଚୟ କରି କହ ଫେଡ଼ି । ନମସ୍ତେ ମୁକୁନ୍ଦ ମୁରାରି ॥ ଶ୍ରୀ ଭଗବାନୁବାଚ— ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତ । ତୋତେ କହିବା ଜ୍ଞାନ ତତ୍ତ୍ୱ ॥ ବାମ ନାସିକା ଗୁରୁ କହି । ଯମୁନା ଧାର ସେ ବୋଲାଇ ॥ ଦକ୍ଷିଣ ନାସାଟି ଅଗ୍ରଜ । ଗଙ୍ଗାଧାରଟି ସେହୁ ହେଜ ॥ ଏବେଣ୍ଣି

ମଧ୍ୟେ ଶନୈଶ୍ଚର । ଏମନ୍ତେ ହେଲା ତନିଧାର । ଏ ତିନି ପବନଙ୍କୁ ଧର । ଶୂନ୍ୟ ଗୁମ୍ଫାରେ ନେଇ ଭର । ଯେଣୁ ଭଲଟ ବ୍ରହ୍ମାଇଲା । ଏଣୁଟି ନମସ୍କାର କଲା । ସୋମ ମଙ୍ଗଳ ଶଙ୍ଖ କହ । ପବନଦୁଇଟା କୁର ହୋଇ ॥ କହଇ ବଳରାମ ଦାସ । ସେ ଦୁଇଟାଙ୍କରେ ମୋର ଆଶ । ୧୫ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତତତମୋଽଧ୍ୟାୟଃ ।

---

## ଅଷ୍ଟସପ୍ତତତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରଇ । କହ ହେ ବ୍ରହ୍ମାଣ୍ଡ ଗୋସାଇଁ । ୧ । ଆତ୍ମାକୁ ଆତ୍ମା ଯେବେ ସ୍ମରେ । ପରମାନନ୍ଦେ ସେ ବିହରେ ॥ ଏ ଜ୍ଞାନ କହ ମୋତେ ଫେରି । ନମସ୍ତେ ପ୍ରଭୁ ଭାବଗ୍ରାହୀ ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜ୍ଜୁନ ବୀରମଣି । ତୋତେ କହିବା ଜ୍ଞାନ ବାଣୀ । ଆତ୍ମା ଯେ ମାତା ରଜ କହି । ଅରେକ ଆତ୍ମା ବୀଜ ହୋଇ । ରଜରେ ବୀଜ ଯୁକ୍ତ ହେଲା । ଆତ୍ମାକୁ ଆତ୍ମା ଯେ ଦ୍ରବିଲା । ରଜ ବୀଜଙ୍କ ମଧ୍ୟେ ଯାଇ । ପରମଆତ୍ମା ବିହରଇ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ଅଷ୍ଟସପ୍ତତତମୋଽଧ୍ୟାୟଃ ।

—ॐ—

## ଊନଶୀତିତମୋଽଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରଇ । ଶୁଣ ହେ କମଳାର ସାଇଁ । ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ । ପଦୁ ଗନ୍ଧରୁ ମକରନ୍ଦ । ସେ ମକରନ୍ଦ ପାନ କର । ଭବୁ ଭକତେ ଗଲେ ତର ।୩। ଗୋବିନ୍ଦ ଧାର କେ ହୋଇଲା । ପାଦରୁ କେମନ୍ତେ

ଗଲାଇ । ତାହା ଭଳଇ ପାନକର । କେମନ୍ତେ ଗଲେ ଲଭୁ ତର । ଏ ଜ୍ଞାନ ଫେଡ଼ି କହ ହର । ଶୁଣିଲେ ଯିବ ମୁଁ ନିସ୍ତର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ବୀରବର । କହିବା ବ୍ରହ୍ମାଣ୍ଡ ଭୂଗୋଳ ।୭। ଗୋବିନ୍ଦ ପାଦୁ ଯେ ବହିଲା । ପଦ୍ମରେ ଯାଇ ବିଶ୍ରାମିଲା । ୮ । ତହିଁରେ ପ୍ରବୃତ୍ତେ ସଞ୍ଚରି । ଗିରିଶିଖର ପରେ ଥାଇ । ଯେ ବାଟେ ବିନ୍ଦୁ ଯେ ପଡ଼ଇ । ଏ ଜୀବ ଧ୍ୟାନ କରୁଥାଇ ।୧୦। ଅଲେଖ ଜ୍ୟୋତି ବ୍ରହ୍ମପଦ । ତହିଁରୁ ଗଲେ ମକରନ୍ଦ ।୧୧। ପଦ୍ମରେ ଥାଇ ପାନ କଲା । ତହିଁରୁ ଉଦ୍ଧାର ହୋଇଲା । ୧୨ । ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି-ଅର୍ଜୁନ ସମ୍ବାଦେ ନାମ ଊନଶୀତିତମୋଽଧ୍ୟାୟଃ ।

---

## ଅଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ପଡ଼ଇ ପୟରେ । ପଚାରେ ଆକୁଳ ଭାବରେ ।୧। ଗୋବିନ୍ଦ କମଳ ଲୋଚନ । ଏ ଅର୍ଥ କହ ଭଗବାନ ॥ କମଳ ଲୋଚନ ତୁମ୍ଭର । କେମନ୍ତେ ହୋଇଲି ଚକ୍ରଧର । ୩ । ଏ ଜ୍ଞାନ ଫେଡ଼ି ମୋତେ କହ । ମନରୁ ଫିଟାଅ ସନ୍ଦେହ । ୦ । ଶ୍ରୀ ଭଗବାନୁବାଚ – କହନ୍ତି କମଳ ଲୋଚନ ଏହା ତୁ ଗଣ୍ଠି କର ଘେନ ॥ ପଦ୍ମ କମଳ ଫୁଟିଥିଲା । ତହିଁରେ ବିନ୍ଦୁ ଯେ ପଡ଼ିଲା ॥ ରଜୋ ବୀଜଙ୍କ ମଧ୍ୟେ ମୁହିଁ । ଜ୍ୟୋତି ରୂପରେ ପ୍ରକାଶଇ ॥ କମଳଲୋଚନ ମୋ ନାମ । ତେଣୁ ହୋଇଲି ହୋ ଅର୍ଜୁନ ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ୯ । ଇତିଶ୍ରୀବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଅଶୀତିତମୋଽଧ୍ୟାୟଃ ।

—୦—

## ଏକାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ମନେ ହେତୁ କରି । ପଚାରେ କୃଷ୍ଣ ପାଦଧରି । ୧ । ଅଶ୍ୱତ୍ଥ ତରୁମୂଳେ ବସି । ନିଜ ମହିମା ପରକାଶି ॥ ଏକଥା ଫଣୟ ମୋହର । ପଚାରୁ ଅଛି ଚକ୍ରଧର ॥ ଶ୍ରୀ ଭଗବାନୁବାଚ—ଏ ଜ୍ଞାନ ନ କହିବୁ କାହିଁ । ମୋହର ପାଦ ଥାଅ ଛୁଇଁ ॥ ଅଶ୍ୱତ୍ଥ ବୃକ୍ଷ ଦେହ ଜାଣ । ତାକୁକାରେ ମୋ ନିଜ ସ୍ଥାନ ॥ ଦେହରେ ଅଶ୍ୱତ୍ଥ ନ ଥିଲେ । ଜୀବ ପରମ ଲୀନ ହେଲେ ॥ ଜୀବେ ପରମ ବ୍ରହ୍ମେ ଲୀନ । ସେହି ବ୍ରହ୍ମଟି ଜ୍ୟୋତି ଜାଣ ॥ ନିଜରୂପଟି ଅଟେ ସେହି । ବୃକ୍ଷ ମୂଳରେ ପ୍ରକାଶଇ ॥ ତକ୍ଷଣେ ଶୂନ୍ୟେ ଚଳିଯାନ୍ତି । ମହାଶୂନ୍ୟରେ ସେ ରହନ୍ତି । ୯ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକାଶୀତିତମୋଽଧ୍ୟାୟଃ ।

— ❀ —

## ଦ୍ୱାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ବୋଲେ ଅର୍ଜୁନ ଶୁଣ ହରି । କଥାଏ ଅଛଇ ମୋହର ॥ ପଦ୍ମନ ଛେଦ ଚକ୍ର ଗଲା । ତୁମ୍ଭର ହସ୍ତକୁ ନଇଲା ॥ ପଦ୍ମନ କେ ଅବା ଅଟନ୍ତି । କେମନ୍ତେ ଚକ୍ରରେ ନାଶନ୍ତି ॥ ଏ ଅର୍ଥ କହ ଆଦମୂଳ । ଶରଣ ତୋ ପାଦ କମଳ ॥ ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ବ୍ରହ୍ମରଷି । ରଙ୍ଗ ଅଧରେ ମନ୍ଦ ହସି ॥ ବକଙ୍କୁ ବନ ବୋଲି କହ । ଅଲେଖ ବ୍ରହ୍ମ ଛନ୍ତି ରହ ॥ ଜଳୟକାଳ ହେଁ ହେଲା । ଶରୀର କାଳ ଅକର୍ପିଲା । ୭ । ପାଦରୁ ବଳୁଲେକ ଯାଏ । ଜଳ ଘୋଟଇ ଅପ୍ରମୟେ ॥ ତା ଦେଖି ପ୍ରଭୁ ଭଗବାନ । ବେଗେ ପେଷିଲେ ସୁଦର୍ଶନ । ୯ । ଶୂନ୍ୟ ଶବଦ

ସୁଦର୍ଶନ । ନକ୍ଷତ୍ରରେ ଛାଡ଼ିଲ ବନ୍ଧନ । ୧୦ । ଜ୍ୟୋତି ରୂପରେ ଛାଡ଼ିଗଲା । କୃଷ୍ଣର ହସ୍ତକୁ ନଇଲା ॥ ଅତି ଗୁପତ ଜ୍ଞାନ ଏହି । ତୋତେ କହିଲି ବାର ଫେଇ । ୧୨ । ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ୱାଶୀତିତମୋଽଧ୍ୟାୟଃ ।

## ତ୍ର୍ୟାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ – ଅର୍ଜୁନ ବୋଲେ ପ୍ରାଣନାଥ । ମନରେ ପଡ଼ିଲା ଯଥାର୍ଥ ।୧। ମୋର ନିବାସ ମାନ ଥିବ । ଜଳେ ଦ୍ୱାରକା ନାଶ ଯିବ ।୨। ଦ୍ୱାରକା ଜଳେ ବୁଡ଼ିଲେ । ତୋର ନିବାସ ନ ବୁଡ଼ିଲା ॥ ଏକଥା କହ ଭବଗ୍ରାହୀ । ମୁଁ ତୁମ୍ଭ ସେବକ ଅଟଇ ॥ ଶ୍ରୀଭଗବାନୁବାଚ—କହନ୍ତି ଦେବକୀ ନନ୍ଦନ । ଶୁଣ ହେ ପାଣ୍ଡବ ଅର୍ଜୁନ ।୫। ତାଳ୍‌କାଞ୍ଚନ ଯେ ଅଟଇ । ଦ୍ୱାରକା ପୁର ତାକୁ କହି ॥ ଶରୀରେ ହରି ଠାଉ ଗ୍ରାସି । ସେଠାରେ ନ ପାରଇ ପଶି ॥ ତହିଁରେ ବ୍ରହ୍ମାଣ୍ଡ ଥୋଆଇ । ବିରାଜେ ଜ୍ୟୋତିରୂପ ହୋଇ ॥ ବ୍ରହ୍ମ ପ୍ରଳୟ ହୋଇଯାଇ ॥ ସମସ୍ତେ ଲୀନ ସେହିଠାଇଁ ॥ କହଇ ବଳରାମଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି-ଅର୍ଜୁନ ସମ୍ବାଦେ ନାମ ତ୍ର୍ୟାଶୀତିତମୋଽଧ୍ୟାୟଃ ।

## ଚତୁରଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲେ ଭଗବାନ । ତୁମ୍ଭେ ଯେ ଜଗତ ରକ୍ଷଣ ॥ କୃଷ୍ଣ ବିଧବା ଯେତେ ନାରୀ । ମିଳିଲେ ଅଭିଷେକ କରି ॥ କୃଷ୍ଣ ଯେ ନିଜପୁର ଗଲେ । କନ୍ୟାଏ ବିଧବା ହୋଇଲେ ॥ ବିଧବା ହେଲେ କୃଷ୍ଣନାରୀ । କେମନ୍ତେ ଅଭିଷେକ କରି ॥ ଏ କଥା ଫେଡ଼ି କହ ମୋତେ । ନମଇଁ ତୋର ପାଦ [illegible] । ଶ୍ରୀ ଭଗବାନୁବାଚ—ଅର୍ଜୁନ ବାକ୍ୟେ ଭଗବାନ୍

କହନ୍ତି ଭୂଗୋଳ ବିଧାନ । ଦେହରୁ ଜୀବ ଛାଡ଼ିଗଲେ । କନ୍ୟାଏ ତହିଁ ଲୀନ ହେଲେ ।। କନ୍ୟାଙ୍କ ଅଭିଷେକ ଏହୁ । ମିଳିଲେ ଜ୍ୟୋତିବ୍ରହ୍ମେ ଯାଇଁ । କହଇ ବଳରାମଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଚତୁରଶୀତିତମୋଽଧ୍ୟାୟଃ ।




।କର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ, କଟକ-୧୯୫୨